# ଡକ୍ଟର ମଥୁରା ସିଂ

## ସହିଦ ଭଗତ ସିଂ

ଭାଷାନ୍ତର

### ଅଧ୍ୟାପକ ନୀଳମଣି ସାହୁ

ସବୁଠୁଁ ଅଧିକ ବିପତ୍ତି ସହନ କରିଥିବା ସତ୍ତ୍ୱେ, ଗଣତିରେ ସବୁଠୁଁ ଅଧିକ ନିଜର ନର-ରତ୍ନଙ୍କୁ ସ୍ୱାଧୀନତା-ବଳିବେଦୀରେ ବଳିଦାନ ଦେଇଥିବା ସତ୍ତ୍ୱେ, ଆଜି ପଞ୍ଜାବକୁ ରାଜନୈତିକ କ୍ଷେତ୍ରରେ ପଛୁଆ (politically backward) ଅଞ୍ଚଳ କୁହା ଯାଉଛି । ବଙ୍ଗଳାରେ ଶ୍ରୀ ଖୁଦିରାମ ବୋଷ ଫାଶିଖୁଣ୍ଟରେ ଝୁଲିଗଲେ । ତାଙ୍କର ଏତେ ଚର୍ଚ୍ଚା ହେଲା ଯେ ସେ ଆଜି ସେହି ଅଞ୍ଚଳର ଘରେ ଘରେ ପରିଚିତ । ଭାରତବର୍ଷର ପ୍ରତ୍ୟେକ ଅଞ୍ଚଳରେ ତାଙ୍କରି ନାମଟି ସୁବିଖ୍ୟାତ । ହେଲେ ପଞ୍ଜାବରେ କେତେ ଯେ ରତ୍ନ ଦେଶ ପାଇଁ ଜୀବନ ଦାନ କରିଛନ୍ତି, କେତେ ଯେ ହସି ହସି ଫାଶୀଖୁଣ୍ଟ ଉପରକୁ ଚଢ଼ି ଯାଇଛନ୍ତି, କେତେ ଯେ ଲଢ଼ୁଲଢ଼ୁ ଛାତିରେ ଗୁଳି ଖାଇ ସହିଦ ହୋଇଛନ୍ତି, ସେମାନଙ୍କୁ ସମସ୍ତଙ୍କୁ କିଏ ଜାଣେ? ଅନ୍ୟ କେଉଁଠିକା କଥା କଅଁଣ କହିବା, ପଞ୍ଜାବରେ ହିଁ ତାଙ୍କୁ କେତେ ଜଣ ଜାଣନ୍ତି? ଏମିତି କୌଣସି ଜଣେ ସାଧାରଣ ବିପ୍ଳବୀ ଫାଶୀଖୁଣ୍ଟରେ ଝୁଲି ଯାଇଛି ଆଉ ତାଙ୍କୁ ଲୋକେ ଏମିତି ହିଁ ଭୁଲି ଯାଇଛନ୍ତି, କଥା ସେମିତିକା ବି ତ ନୁହେଁ । ସେମାନେ ଯେଉଁ ଅକ୍ଳାନ୍ତ ପରିଶ୍ରମ କରି, ଅଦମ୍ୟ

ଉତ୍ସାହରେ ତଥା ଅତୁଳନୀୟ ସାହସର ସହିତ ଭାରତର ଉତ୍ଥାନ ପାଇଁ ଏପରି ଏପରି କାମମାନ କରି ଦେଇ ଗଲେ, ଆଜି ଶୁଣି ଅବାକ୍ ହୋଇ ରହିଯିବା ଛଡ଼ା ଅନ୍ୟ ଗତି ନାହିଁ! ଯଦି ଏପରି ରତ୍ନ ଅନ୍ୟ କୌଣସି ଦେଶରେ ଜନ୍ମ ଧାରଣ କରିଥାନ୍ତେ, ତେବେ ଆଜି ୱାଶିଙ୍ଗ୍‌ଟନ୍, ଗାରିବାଲ୍ଡି ତଥା ୱିଲିଏମ୍ ୱାଲିସ୍‌ଙ୍କ ଭଳି ସେମାନଙ୍କର ମଧ୍ୟ ପୂଜା ହେଉଥାନ୍ତା । କିନ୍ତୁ ସେମାନେ ଏକ ଅକ୍ଷମଣୀୟ ଅପରାଧ କରିଥିଲେ — ସେମାନେ ଭାରତରେ ଜନ୍ମ ହୋଇଥିଲେ। ତାହାର ଦଣ୍ଡ ସ୍ୱରୁପ ସେମାନଙ୍କୁ ଆଜି ବିସ୍ମୃତିର ଅନ୍ଧକାର ଗର୍ଭକୁ ଫୋପାଡ଼ି ଦିଆ ଯାଇଛି । ନା ସେମାନଙ୍କର କାର୍ଯ୍ୟର ଚର୍ଚ୍ଚା ହେଉଛି, ନା ତ୍ୟାଗର, ନା ବଳିଦାନଜନିତ ଖ୍ୟାତିର, ନା ସାହସର । କାହାର ବି ଚର୍ଚ୍ଚା ହେଉନି। ତେବେ ଏପରି କୃତଘ୍ନତା ଦେଖଉଥିବା ଦେଶର ଉନ୍ନତି ହେବ କିପରି?

ଦୃଢ଼ ଆଦର୍ଶବାଦୀ ଡକ୍ଟର ମଥୁରା ସିଂ ଜୀଙ୍କ ସ୍ଥାନ କିନ୍ତୁ ବାସ୍ତବରେ ବହୁତ ଉଚ୍ଚରେ । ତାଙ୍କର ଜନ୍ମ ୧୮୮୩ ମସିହାରେ ପଞ୍ଜାବର ଝେଲମ୍ ଜିଲ୍ଲାର ଢୁଡିୟାଲ୍ ନାମକ ଗ୍ରାମରେ ହୋଇଥିଲା । ତାଙ୍କ ପିତାଙ୍କ ନାମ ସରଦାର ହରିସିଂ ଥିଲା । ପ୍ରଥମେ ସେ ନିଜ ଗାଁରେ ଶିକ୍ଷା ପ୍ରାପ୍ତ କରି, ପରେ ଚକୱାଲ୍‌ର ହାଇସ୍କୁଲରେ ପଢ଼ିଥିଲେ । ତାଙ୍କର ବୁଦ୍ଧି ବଡ଼ ତୀକ୍ଷ୍ଣ ଥିଲା । ସେ ସର୍ବଦା ତାଙ୍କର ସହପାଠୀମାନଙ୍କ ମଧ୍ୟରେ ବହୁତ ଭଲ କରୁଥିଲେ । ଏଇଠୁଁ ମେଟ୍ରିକ୍ ପାସ୍ କରିବା ପରେ ସେ ପ୍ରାଇଭେଟ୍ ଭାବେ ଡାକ୍ତରୀ କାର୍ଯ୍ୟ ଶିଖିବାରେ ଲାଗିଲେ । ମେସର୍ସ୍ ଜଗତସିଂ ଏଣ୍ଡ୍ ବ୍ରଦର୍ସଙ୍କ ଦୋକାନ ରାଓଲ୍‌ପିଣ୍ଡିରେ ଥିଲା । ସେଠାରେ ହିଁ ସେ ଏହି କାର୍ଯ୍ୟ ଶିଖିବା ଆରମ୍ଭ କଲେ । ବଡ଼ ଯତ୍ନରେ ସହ ସେ ସବୁ କାର୍ଯ୍ୟ କରୁଥିଲେ । ତିନ ଚାରି ବର୍ଷ ମଧ୍ୟରେ ସେ ଏହି କାର୍ଯ୍ୟରେ ପ୍ରବୀଣ ହୋଇଗଲେ । ପରେ ସେ ତାଙ୍କର ନିଜର ଅଲଗା ଦୋକାନ ଖୋଲିଲେ । ସେହି ଦୋକାନଟି ନୌଶେରା ଛାଉଣିରେ ଥିଲା ।

ସେ ସବୁ ଦେଶରୁ ଚିକିତ୍ସା ସମ୍ବନ୍ଧୀୟ ପତ୍ର-ପତ୍ରିକା ମଗାଉଥିଲେ । ବିଶେଷ ଶିକ୍ଷା ହାସଲ କରିବା ପାଇଁ ସେ ଆମେରିକା ଯିବା ଚିନ୍ତା କଲେ । ଦୋକାନର ଝଞ୍ଜଟ ନ ତୁଟୁଣୁ ତାଙ୍କ ସ୍ତ୍ରୀ ଓ କନ୍ୟାଙ୍କର ଦେହାନ୍ତ ହୋଇଗଲା । ହେଲେ ସେଥିରେ କଅଁଣ ହୋଇଥାନ୍ତା? ସେ ସେଠାକୁ ପ୍ରସ୍ଥାନ କଲେ । ସେ ୧୯୧୩ ରେ ଯାଇଥିଲେ । କିଛି ଅଧିକ ଟଙ୍କାପଇସା ପାଖରେ ନଥିବା କାରଣରୁ ତାଙ୍କୁ ସାଙ୍ଘାଇରେ ହି ଅଟକି ଯିବାକୁ ପଡ଼ିଥିଲା । ସେଠାରେ ସେ ଚିକିତ୍ସା କାର୍ଯ୍ୟ ଆରମ୍ଭ କରି ଦେଲେ ଓ ତାଙ୍କୁ ସେଠାରେ ବହୁତ ସଫଳତା ମିଳିଥିଲା । କିନ୍ତୁ ତାଙ୍କର ଲକ୍ଷ୍ୟ ତ କ୍ୟାନାଡ଼ା ଯିବାର ଥିଲା, ତେଣୁ ସେ ଅନ୍ୟ କେତେକ ଭାରତୀୟଙ୍କ ସାଥିରେ ସେଠାକୁ ଗଲେ । ତେବେ ସେଠାରେ ତାଙ୍କୁ ବହୁତ ହଇରାଣ ହରକତର ସାମନା କରିବାକୁ ପଡ଼ିଥିଲା । ପ୍ରଥମେ କେବଳ ତାଙ୍କୁ ଓ ଅନ୍ୟ ଜଣେ ଭଦ୍ରଲୋକଙ୍କୁ ସେଠାରେ ଓହ୍ଲେଇବା ପାଇଁ ଆଜ୍ଞା ମିଳିଲା, ଅନ୍ୟମାନଙ୍କୁ ମିଳିଲାନି । ଏଣୁ ସେଠାରେ ଓହ୍ଲେଇବା ପାଇଁ ସେ ଉଚିତ ମନେ କଲେନି । ହେଲେ ସାଥୀମାନଙ୍କ ଆଗ୍ରହ ଯୋଗୁଁ ସେ ସେଠାରେ ଓହ୍ଲେଇଲେ ଠିକ୍, କିନ୍ତୁ ସେଠାରେ ଅନ୍ୟ ସାଥୀମାନଙ୍କ ପାଇଁ ଇମିଗ୍ରେସନ୍ ବିଭାଗ ଝଗଡ଼ା ଆରମ୍ଭ କରି ଦେଲା । ମକଦ୍ଦମା ପର୍ଯ୍ୟନ୍ତ କଥା ଗଲା । ତେବେ ଆଇନକାନୁନ୍, କୋର୍ଟକଚିରି ସବୁ ତ କେବଳ ବଳଶାଳୀ ଲୋକଙ୍କ ପାଇଁ ହୋଇଥାଏ, ପରାଧୀନ ଦେଶବାସୀଙ୍କ ପାଇଁ ନୁହେଁ । ସେଠାରୁ ତାଙ୍କୁ ଓ ଅନ୍ୟ ଭାରତୀୟ ଯାତ୍ରୀଙ୍କୁ ଫେରାଇ ଦିଆଗଲା । ସେଇ ଏକା ଓର: କ୍ୟାନାଡ଼ାକୁ ସେମାନେ କୌଣସି ଜାହାଜରେ ସିଧା ଆସି ନଥିଲେ । ସେ ସାଙ୍ଘାଇ ଫେରି ଆସି ଭାରତୀୟ ଲୋକମାନଙ୍କୁ ନିଜର ଦୀନହୀନ ଦଶାର ମର୍ମଭେଦୀ କାହାଣୀ ଶୁଣେଇଲେ ଓ ଶ୍ରୀ ବାବା ଗୁରୁଦ ସିଂ ଜୀଙ୍କୁ ନିଜର ଏକ ଜାହାଜ ତିଆରି କରିବା ପାଇଁ ପରାମର୍ଶ ଦେଲେ, ଯାହା ସିଧା କ୍ୟାନାଡ଼ା ଯିବ । ଏହି ପରାମର୍ଶ

ଅନୁସାରେ ବାବା ଜୀ କାମାଗାଟାମାରୁ ଜାହାଜକୁ ଭଡ଼ାରେ ନେଲେ ଓ ତାର ନାମ ଗୁରୁନାନକ ଜାହାଜ ରଖିଲେ । ହେଲେ ତାଙ୍କୁ ଏଆଡ଼େ ପଞ୍ଜାବକୁ ଆସିବାକୁ ପଡ଼ିଲା। ଜାହାଜ ଶୀଘ୍ର ପ୍ରସ୍ତୁତ ହୋଇଗଲା, ତେବେ ସେ ଫେରି ନିଶ୍ଚିତ ଦିନ ବେଳକୁ ସେଠାରେ ପହଞ୍ଚି ପାରିଲେନି । ସିଙ୍ଗାପୁରରୁ ପାଖାପାଖି ଅନ୍ୟ ୩୫ ଜଣ ସାଥୀଙ୍କ ସହ ଅନ୍ୟ ଜାହାଜରେ ଚାଲିଲେ, ଯେପରି ସାଙ୍ଘାଇ ମଧ୍ୟରେ କାମାଗାଟାମାରୁକୁ ଭେଟି ସେଥିରେ ଚଢ଼ିବେ । ହଂଗ୍‌କଂଗ୍ ପହଞ୍ଚିବା ପରେ ଜଣା ପଡ଼ିଲା ଯେ ଜାହାଜ ସେଠାରୁ ବି ଯାଇ ସାରିଥିଲା । ତେଣୁ ସେ ସେଠାରେ ହିଁ ରହିଗଲେ । ଏତିକି ବେଳକୁ ସେ ଭାରତର ସ୍ୱତନ୍ତ୍ରତା ପାଇଁ ଜୀବନ ଅର୍ପଣ କରିବା ନିଷ୍ପତ୍ତି କରି ସାରିଥିଲେ ।

ହଂଗ୍‌କଂଗରେ ସେ ପ୍ରଚାର କାର୍ଯ୍ୟ ଆରମ୍ଭ କରି ଦେଲେ । ଆମେରିକାରୁ ଗଦର ପାର୍ଟିର "ଗଦର" ଖବରକାଗଜ ଆସୁଥିଲା । ସେ ବି ସେଠାରେ ସେମିତି ହିଁ ଗୁପ୍ତ ଖବରକାଗଜ ଛପେଇ ଲୋକଙ୍କ ମଧ୍ୟରେ ବାଣ୍ଟିବାରେ ଲାଗିଲେ । ସେପଟୁ କାମାଗାଟାମାରୁ ଜାହାଜ ଉପରେ ଯେଉଁ ସବୁ ଅତ୍ୟାଚାରମାନ ହେଉଥିଲା, ସେସବୁର ଖବର ତାଙ୍କୁ ମିଳୁଥିଲା । ଯେତେବେଳେ ଜଣା ପଡ଼ିଲା ଯେ କାମାଗାଟାମାରୁ ଜାହାଜକୁ ଫେରି ଆସିବାକୁ ହିଁ ପଡ଼ିବ, ସେ ବଡ଼ ଜୋର୍‌ରେ ପ୍ରଚାର ଆରମ୍ଭ କରି ଦେଲେ । ସେହି ସମୟରେ କେଣ୍ଟନ୍‌ରେ ଜଣେ ଶିଖ୍ ପୋଲିସ୍ ଇନ୍ସପେକ୍ଟର୍ ମହାଶୟ ଏହି ସବୁ ଆନ୍ଦୋଳନକୁ ଦମନ କରିବା ପାଇଁ ବହୁତ ଚେଷ୍ଟା କରୁଥିଲେ । ସେ ତାଙ୍କ ସହ ମିଶି ଯେଉଁ କଥାବାର୍ତ୍ତା କଲେ ତାରି ଫଳରେ ସେହି ମହାଶୟ ବି ଏହାଙ୍କ ସହାୟତା କରିବାରେ ଲାଗିଲେ । ସେ କୌଣସି କାର୍ଯ୍ୟରେ ସାଙ୍ଘାଇ ଗଲେ । ଯିବା ସମୟରେ ସମସ୍ତଙ୍କୁ କହି ଗଲେ ଯେ ଏବେ କାମାଗାଟାମରୁ ଜାହାଜରେ ଚଢ଼ି ଭାରତକୁ ଫେରିଯିବା ଉଚିତ । କିନ୍ତୁ ତାଙ୍କର ଏହି ନିଷ୍ପତ୍ତି ଜାଣି

ସରକାର ଜାହାଜକୁ ସାଙ୍ଘାଇରେ ରହିବାକୁ ହିଁ ଦେଲେନି । ତାର ଦିନେ ଦୁଇ ଦିନ ପରେ ସମସ୍ତେ ଅନ୍ୟ ଜାହାଜ ଚଢ଼ି ଭାରତ ଫେରି ଆସିଲେ । କାମାଗାଟାମାରୁ ଜାହାଜ ହୁଗୁଳିରେ ହିଁ ଥିବାବେଳେ ସେମାନେ କଲିକତାରେ ପହଞ୍ଚି ଯାଇଥିଲେ। କିନ୍ତୁ ସେଠାରେ ସରକାର ପଞ୍ଜାବକୁ ଟିକଟ ଦେଇ ସମସ୍ତଙ୍କୁ ଗାଡ଼ିରେ ଚଢ଼େଇ ଦେଲେ । ଅମୃତସରରେ ପହଞ୍ଚୁ ନ ପହଞ୍ଚୁଣୁ ବଜ୍‌ବଜ୍‌ର ଘଟଣାଟି ଘଟିଲା । ସମସ୍ତ ସମାଚାର ମିଳିଲା । କ୍ରୋଧ ବିହ୍ୱଳ ହେଲେ । ପ୍ରତିହିଂସାର ଜ୍ୱାଳା ତେଜୀୟାନ ହେଲା । କିନ୍ତୁ ଡକ୍ଟର ଜୀ ନିଜର ଅନ୍ୟ ସାଥୀମାନଙ୍କୁ ବୁଝେଇସୁଝେଇ ଶାନ୍ତ କରେଇଲେ, ଓ ସେମାନଙ୍କୁ ପ୍ରଚାର କାର୍ଯ୍ୟରେ ବ୍ୟାପୃତ ରଖିବା ସଙ୍ଗେ ସଙ୍ଗେ ନିଜେ ସଂଗଠନ କାର୍ଯ୍ୟ ଆରମ୍ଭ କଲେ । ଅନ୍ୟ ପକ୍ଷରେ, ଏହି ବିରାଟ ଉଦ୍ୟୋଗରେ ତାଙ୍କୁ ବୋମା ତିଆରି କରିବା ଦାୟିତ୍ୱ ଦିଆ ଯାଇଥିଲା। ତହିଁରେ ସେ ବଡ଼ ନିପୁଣ ଥିଲେ । ଆମେରିକାରୁ ଶହ ଶହ ମତୁଆଲା ଯୋଦ୍ଧା ବିପ୍ଳବର ନିଆଁ ଜାଳିବା ପାଇଁ ଆସିବାରେ ଲାଗିଲେ । ତୁରନ୍ତ ସବୁ ବ୍ୟବସ୍ଥା ହୋଇଗଲା । ବିପ୍ଳବ ଦଳର ଏଡ଼େ ବିରାଟ ସଂଗଠନ ଦଣ୍ଡାୟମାନ ହେଲା ଯେ ସାରା ଭାରତରେ ଏକା ସଙ୍ଗେ ବିଦ୍ରୋହ ଆରମ୍ଭ କରିବା ଭାବନା ଜାତ ହେଲା ଓ ଏପରିକି ଦିନ ମଧ୍ୟ ଧାର୍ଯ୍ୟ ହୋଇଗଲା । ଦେଖୁ ଦେଖୁ ସବୁ ପ୍ରଯତ୍ନ, ସବୁ ଆୟୋଜନ ବିଫଳ ହୋଇଗଲା । କୃପାଳୁଙ୍କ କୃପଣତା ଯୋଗୁଁ ଯାହା ସବୁ ହେଇଥିଲା ଅଧାରେ ହିଁ ରହିଗଲା । ଚାରି ଆଡ଼େ ଧର ପକଡ଼ ଆରମ୍ଭ ହୋଇଗଲା। କିନ୍ତୁ ସେ ଧରା ପଡ଼ିଲେନି । ଥରେ ଏକ ସରକାରୀ ଗୁଇନ୍ଦା ଜରିଆରେ ତାଙ୍କୁ କୁହା ଯାଇଥିଲା ଯେ ଯଦି ସେ ସରକାରୀ ସାକ୍ଷୀ ହେଇଯିବେ, ତେବେ ତାଙ୍କୁ କ୍ଷମା କରିବା ସହ ବହୁତ ବଡ଼ ପୁରସ୍କାର ବି ଦିଆଯିବ । ସେତେବେଳେ ସେ ସେହି ପ୍ରସ୍ତାବକୁ ବିଲ୍‌କୁଲ୍ ଉପେକ୍ଷା କରି ପ୍ରତ୍ୟାଖ୍ୟାନ କରିଥିଲେ । ପୁଣି ଥରେ

ଜଣେ ଗୁଇନ୍ଦା ଅଫିସର ତାଙ୍କ ପାଖ ପର୍ଯ୍ୟନ୍ତ ଚାଲି ଆସିଥିଲା । କିନ୍ତୁ ସେ ଜାଣିଥିଲା ଯେ ଡକ୍ଟର ସାହେବ ଥିଲେ ଜଣେ ବଡ଼ ନିର୍ଭୀକ ବିପ୍ଳବୀ, ତେଣୁ ତାଙ୍କୁ ଏକେଲା ଗିରଫ କରିବା ପାଇଁ ତାର ସାହସ ପାଇଲାନି । ଓଲଟା ସେ ତାଙ୍କୁ କହିଲା ଯେ ସରକାର ତାଙ୍କୁ କ୍ଷମା କରି ଦେଇଛନ୍ତି ଓ ପୁରସ୍କାର ଦେବା ପାଇଁ ବଚନ ଦେଇଛନ୍ତି, ଏହା କହିବା ପାଇଁ ହିଁ ମୁଁ ଆସିଛି । ଡକ୍ଟର ସାହେବ ବି ଭଲ ଭାବେ ଜାଣି ଥିଲେ ଯେ ସେ ସେହି ସମୟରେ ତାଙ୍କୁ ଧରିବା ପାଇଁ ସାହସ କରିପାରି ନଥିବା ଯୋଗୁଁ ଏପରି ଗପୁଥିଲା । ଏହି ଭାବେ କିଛିଟା ସମ୍ମତି ଜଣେଇ ତାକୁ ପଛରୁ ଛଡ଼େଇ ଭାଗି ପଳେଇଲେ। ଅବସ୍ଥା ଦେଖି ସେ ବୁଝି ପାରିଲେ ଯେ ବର୍ତ୍ତମାନ ପରିସ୍ଥିତିରେ ଦେଶ ଭିତରେ ବଞ୍ଚି ରହିବା ଏକବାରେ ଅସମ୍ଭବ, ତେଣୁ ସେ କାବୁଲ୍ ଆଡ଼କୁ ଚାଲିଗଲେ । ବଜୀରାବାଦ୍ ଷ୍ଟେସନ୍‌ରେ ପୋଲିସ୍ ଧରି ନେଲା, କିନ୍ତୁ ସେଠାରେ ସେ କିଛି ଲାଞ୍ଚ ଦେଇ ଖସି ଗଲେ ଓ କୋହାଟ ଆଡ଼କୁ ମୁହାଁଇଲେ । ପୋଲିସ୍‌କୁ ବି ଖବର ମିଳିଗଲା। କୋହାଟ ଷ୍ଟେସନ୍‌ରେ ପୋଲିସ୍‌ର ଏକ ବଡ଼ ଦଳକୁ ପହରା ଦେବାରେ ଲଗେଇ ଦିଆ ଯାଇଥିଲା । ସେହି ଟ୍ରେନ୍‌ରେ ବହୁତ ସଂଖ୍ୟାରେ ପୋଲିସ୍‌ଙ୍କୁ ବି ଚଢ଼େଇ ଦିଆଗଲା, ରାସ୍ତାରେ ଏକା ସମୟରେ ସବୁ ଡବାରେ ତଲାସି ହେଲା, ହେଲେ ସେ ଧରା ପଡ଼ାଲେନି । କିଛି ଦିନ ସେଠାରେ ରହିବା ପରେ କାବୁଲ୍‌ରେ ଯାଇ ପହଞ୍ଚିଲେ । ସେଠାରେ ତୁରନ୍ତ ଅତି ପ୍ରସିଦ୍ଧ ହୋଇଗଲେ । ତାଙ୍କର ଯୋଗ୍ୟତା ଦେଖି ତାଙ୍କୁ କାବୁଲ୍‌ର ଚିଫ୍ ମେଡ଼ିକେଲ୍ ଭାବେ ନିଯୁକ୍ତ କରାଗଲା ।

ଭାରତ ଭିତରେ ରାଷ୍ଟ୍ର ବିପ୍ଳବର ସମସ୍ତ ଚେଷ୍ଟା ବିଫଳ ହୋଇ ଯାଇଥିଲେ କଅଁଣ ହେଲା, ବାହାରେ ତ ଏବେ ଉଦ୍ୟମ ଜୋର୍‌ସୋର୍‌ରେ ଚାଲୁ ରହିଥିଲା । କାବୁଲ୍‌ରେ ସେହି ସମୟରେ ଯେଉଁ ଅସ୍ଥାୟୀ ସରକାର (Provisional

Government of India) ଗଢ଼ା ଯାଇଥିଲା, ତାହା ଜର୍ମାନୀ କମିଟିର ସହଯୋଗରେ ଭାରତର ସ୍ୱାଧୀନତା ପାଇଁ ପ୍ରଯତ୍ନ କରିବାରେ ଜୁଟି ଯାଇଥିଲା । ଏହି ସମୟରେ ଆରବ, ମିଶର, ମେସୋପୋଟାମିୟା ଓ ଇରାନ ଆଦି ସମସ୍ତ ଅଞ୍ଚଳରେ ଭାରତୀୟ ବିପ୍ଳବୀମାନେ — ଯାହାଙ୍କ ମଧ୍ୟରେ ହିନ୍ଦୁ, ମୁସଲମାନ, ଶିଖ ବି ରହିଥିଲେ — ଭାରତରେ ବିପ୍ଳବ କରିବା ଚେଷ୍ଟାରେ ରହିଥିଲେ । ସେହି ସବୁ ପ୍ରୟାସରେ ଡକ୍ଟର ସାହେବ ପୁଣି ଜୁଟି ଗଲେ । ସେହି ସଂକ୍ରାନ୍ତରେ ତାଙ୍କୁ ଜର୍ମାନୀ ଯିବାକୁ ପଡ଼ିଥିଲା । କିଛି ଦିନ ପରେ ସେ ପୁଣି ଫେରି ଆସିଲେ। ଇରାନ ପର୍ଯ୍ୟନ୍ତ ତ ତାଙ୍କୁ ବହୁବାର ଯିବାକୁ ପଡ଼ିଥିଲା । ପୁଣି ନିଷ୍ପତ୍ତି ହେଲା ଯେ ଅସ୍ଥାୟୀ ସରକାର ତରଫରୁ ଏକ ସ୍ୱର୍ଣ୍ଣପତ୍ର ରୁଷିଆର ଜାରଙ୍କ ନିକଟକୁ ଏହି ଆଶାରେ ପଠାଯାଉ ଯେ ସେ ଭାରତର ବିପ୍ଳବକୁ ସହାୟତା କରିବେ। ଏଥର ବଡ଼ ମାନ ମର୍ଯ୍ୟାଦା ସହ ବିଦାୟ ଦିଆଗଲା । କେତେକ ସେବକ ଓ ସାମାନଭରା ଓଟ ତାଙ୍କ ସାଥୀରେ ଥିଲେ । କିନ୍ତୁ ସେହି ସମୟରେ କୌଣସି ଅଧମ ତାଙ୍କରି ଯାତ୍ରାର ସମସ୍ତ ଖବର ଇଂରେଜ ସରକାରଙ୍କୁ ଦେଉଥିଲା। ଏକଥା ସେ ଜାଣି ନଥିଲେ । ତାସକନ୍ଦ ନଗରରେ ତାଙ୍କୁ ଗିରଫ କରି ଦିଆଗଲା । ଇରାନ ଆଣି ତାଙ୍କୁ ଚିହ୍ନଟ କରାଗଲା । ମକଦ୍ଦମା ଚାଲିଲା । ବହୁତ ଲୋକ ଉଦ୍ୟମ କଲେ ଯେପରି ତାଙ୍କୁ ବିଚାର ପାଇଁ ଭାରତ ସରକାରଙ୍କ ପାଖକୁ ସୁପର୍ଦ୍ଦ କରା ନଯାଏ । ତେବେ ଏବେ ଯାଏଁ ଯେତେ ସବୁ ଉଦ୍ୟମ ହୋଇଥିଲା ସେଥିରେ ଅସଫଳତା ମିଳିଥିବା ବେଳେ, ଏବେ ହିଁ କାହିଁକି ବା ସଫଳତା ମିଳନ୍ତା?

ଲାହୋରକୁ ଅଣାଗଲେ । ଏଠି ସେତେବେଳେ ଓଡାୟର ଶାସନର ଜୋର୍ ଥିଲା । କିଛି ଦିନ ନ୍ୟାୟ-ନାଟକ ଚାଲିଲା । ମୃତ୍ୟୁଦଣ୍ଡ ଶୁଣେଇ ଦିଆଗଲା । ସେ ବହୁତ ଆନନ୍ଦିତ ମନରେ ଏହି କଥା ଶୁଣିଥିଲେ । ତାଙ୍କ ସାନ ଭାଇ ଦେଖାସାକ୍ଷାତ

ପାଇଁ ଗଲେ । ସେ ପଚାରିଲେ, "କଅଁଣ ଭାଇ, ମୋର ମରିବା ଚିନ୍ତା ତୁମକୁ ନାହିଁ ତ?" ବାଳକଟି କାନ୍ଦି ପକେଇଲା । ସେ କ୍ରୋଧ-ମିଶ୍ରିତ ଉତ୍ସାହବର୍ଦ୍ଧକ ସ୍ୱରରେ କହିଲେ, "ବାହାରେବା! ଏହା ତ ଆନନ୍ଦିତ ହେବା ବେଳ । କଅଁଣ ଶିଖ୍ ଲୋକ ବି ଦେଶ ପାଇଁ ମରିବା ସମୟରେ କାନ୍ଦନ୍ତି? ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ମୁଁ ଭାରତୀୟ ବିପ୍ଳବକୁ ସଫଳ କରିବା ପାଇଁ ଯାହା ମୋ ଦ୍ୱାରା ସମ୍ଭବ ହୋଇ ପାରିଲା, କରିଛି । ମୁଁ ବଡ଼ ଖୁସୀରେ ଫାଶୀଖୁଣ୍ଟରେ ପ୍ରାଣ ତ୍ୟାଗ କରିବି ।" ଏଇ ଭାବେ ସେ ତାଙ୍କର ଉତ୍ସାହ ବଢ଼େଇ ଥିଲେ ।

ତା ପରେ? ତା ପରେ ୨୭ ମାର୍ଚ୍ଚ, ୧୯୧୭ ଦିନଟି ଆସି ପହଞ୍ଚି ଗଲା । ସେଇ ଦିନ ପୁଣି ସେହି ନାଟକ ଆରମ୍ଭ ହେଲା । ସେହି ନାଟକରେ ଗୋଟିଏ ହିଁ ଦୃଶ୍ୟ ରହିଥାଏ ଓ ତାହା ବି କେତେକ ମିନିଟର । ଏହି ପାଗଳମାନେ କେଜାଣି କେଉଁଠୁ ଆସିଲେ, ଯାହାର ଅଛି ନା ମୃତ୍ୟୁର ଭୟ, ନା ଜୀଇଁବାର ଇଚ୍ଛା; କାର୍ଯ୍ୟ କ୍ଷେତ୍ରରେ ହସୁଥିଲେ, ଯୁଦ୍ଧ କ୍ଷେତ୍ରରେ ହସୁଥିଲେ, ଫାଶୀଖୁଣ୍ଟ ଉପରେ ବି ହସି ଦେଲେ । ସେମାନଙ୍କର ମହିମା ଅପାର ।

"ହୋଁ ଫରିସ୍ତେ ଭି ଫିଦା ଜିନ୍ ପର ୟେ ୱୋ ଇନ୍‌ସାନ୍ ହେଁ!"

(ଦେବଦୂତ ପ୍ରୀତ ଯାହାଙ୍କ ଉପରେ ଏମାନେ ହିଁ ଥିଲେ ସେଇ ମଣିଷ!)

e-mail: neelamanisahu@rediffmail.com

୯୪୩୭୫୧୫୭୮୨